# ଶ୍ରୀ ଜଗତ୍ ସିଂ

## ସହିଦ ଭଗତ ସିଂ

ଭାଷାନ୍ତର

ଅଧ୍ୟାପକ ନୀଳମଣି ସାହୁ

*(ଏହି ଲେଖାଟି "ସୁରେନ୍ଦ୍ର" ଛଦ୍ମନାମରେ ଲେଖା ଯାଇଥିଲା ।)*

ସେ କେଉଁଠି ଜନ୍ମ ହୋଇଥିଲେ, କେଉଁଠି ରହୁଥିଲେ, ଇତ୍ୟାଦି ସମ୍ପର୍କରେ କିଛି ଖୋଜ୍ ଖବର୍ ମିଳିଲାନି । ହଁ, ଅବଶ୍ୟ ଏତିକି ଜଣା ପଡ଼ିଲା ଯେ ଦିନ ପରେ ଦିନ ଶିଖମାନଙ୍କୁ ବହୁ ସଂଖ୍ୟାରେ ଆମେରିକା ଯାଉଥିବା ଦେଖି ସେ ବି ସେଠିକି ଚାଲି ଯାଇଥିଲେ ଓ ସେଠାରେ ଗଦର (ବିପ୍ଲବ) କଥା ଉଠିବାରୁ ନିଜ ଦେଶର ସ୍ୱାଧୀନତା-ଲଢ଼େଇରେ ଦି ଦି ହାତ ହୋଇଯିବା ଲାଳସାରେ ପୁଣି ଏଠିକୁ ଫେରି ଆସିଲେ । ତାଙ୍କର ଶରୀର ବହୁତ ସୁଦୃଢ଼ ତଥା ବଳିଷ୍ଠ ଥିଲା ଓ ଶିଖଙ୍କ ମଧ୍ୟରେ ତାଙ୍କ ଭଳିଆ ଦୈତ୍ୟାକାର ଶରୀରବାଲା ମଣିଷ ଆଉ କେହି ନଥିଲେ ।

ସେ ଦିନ କୃପାଳୁଙ୍କ କୃପାରୁ ବିପ୍ଲବର ସମସ୍ତ ଚେଷ୍ଟା ବିଫଳ ହୋଇଯିବା ପରେ ପୁଣି ଥରେ ଭାଗ୍ୟ ପରୀକ୍ଷା ଉଦ୍ଦେଶ୍ୟରେ ଆଉ ଥରେ କାର୍ଯ୍ୟ ଆରମ୍ଭ କରାଗଲା । ରାସବିହାରୀଙ୍କ ସମସ୍ତ ସାଥୀ ତ ଧରା ପଡ଼ିଯାଇ ଥିଲେ । ତଥାପି ପୋଲିସ୍ ଆତଙ୍କ ସେହି ଭଳିଆ ହିଁ ଜାରି ରହିଥିଲା । ପ୍ରତି ମୁହୂର୍ତ୍ତରେ ବିପଦର ସମ୍ଭାବନା ଥିଲା । ତେବେବି, କୌଣସି କାମରେ ଜଗତସିଂଙ୍କୁ ଆଉ ଦୁଇ ଜଣ ସାଥୀଙ୍କ ସହ ବାହାରକୁ ପଠେଇ ଦିଆଗଲା ।

ତିନି ଜଣ ଶିଖଙ୍କୁ ଟଙ୍ଗାରେ ଯାଉଥିବା ଦେଖି ପୋଲିସ୍ ସେମାନଙ୍କୁ ଘେରି ନେଲା ଓ ଥାନାକୁ ଯିବା ପାଇଁ ବାଧ୍ୟ କରିବାରେ ଲାଗିଲା । ଏହି ବୀରମାନେ ଜାଣିଥିଲେ ଯେ ଥାନାକୁ ଯିବା ମାନେ ମରଣ ମୁହଁକୁ ଯିବା ଓ ସେଠାକୁ ଯାଇ ଠିକ୍ ଠାକ୍ ଠିକଣା ବି ଦେଇ ପାରିବେନି । ତେଣୁ ଶେଷଥର ପାଇଁ ଭାଗ୍ୟ ପରୀକ୍ଷା କରିବା ନିଷ୍ପତ୍ତି ନେଇ ଏଇ ତିନିହେଁ ହିଁ ଆଗ ଗୁଳି ଚଳେଇବା ଆରମ୍ଭ କରିଦେଲେ ।

କିଛି ସମୟ ପର୍ଯ୍ୟନ୍ତ ଗୁଳି ଚାଲିବା ପରେ ଏମାନଙ୍କ ମଧ୍ୟରୁ ଜଣେ ଖସି ପଳେଇଲା ଓ ଆଉ ଜଣେ ପୋଲିସ୍ ହାତରେ ଧରା ପଡ଼ିଗଲା । ତୃତୀୟ ବ୍ୟକ୍ତି ଜଗତ୍‌ସିଂ ନିଜେ ପୋଲିସ୍ ହାତରୁ ଖସିଯାଇ ପାଇପ୍‌ରୁ ପାଣି ପିଇ ହାତ ପୋଛୁଥିବା ବେଳେ ପଛଆଡୁ ଏହାଙ୍କଠୁଁ ବି ଅଧିକ ବଳଶାଳୀ ମୁସଲମାନ ଜଣେ ଆସି ଏହାଙ୍କ ଗୋଡ଼ ଦୁଇଟିକୁ ଏପରି ଜୋର୍‌ରେ ଭିଡ଼ି ଧରିଲା ଯେ ସେ ସେଠୁଁ ପଳେଇବା ପାଇଁ ହଲଚଲ ବି ହୋଇ ପାରିଲେନି ।

ତଳେ ପଡୁ ପଡୁ ତାଙ୍କୁ ଗିରଫ କରି ନିଆଗଲା । ଅନ୍ୟ ଲୋକଙ୍କ ସହ ମକଦ୍ଦମା ଚାଲିଲା । ୟାଙ୍କୁ ବି ଫାଶିଦଣ୍ଡ ମିଳିଲା । ଏହି ଭାବେ ସେ ନିଜର ପାର୍ଟ ସାରି ବିପ୍ଳବ ନାଟକର ଆଉ ଏକ ଦୃଶ୍ୟର ପରଦା ପକେଇ ଚାଲିଗଲେ ।

e-mail: neelamanisahu@rediffmail.com

୯୪୩୭୫୧୫୭୮୨